ପଡ଼ିଦାନୀ

ଓ

# ମହାଲକ୍ଷ୍ମୀ ସ୍ତୁତି

ଶ୍ରୀ ଅକ୍ରୁର ସାଧୁଶର୍ମାଙ୍କ ଦ୍ୱାରା

ରଚିତ ଓ ପ୍ରଥମବାର ପ୍ରକାଶିତ



ଶ୍ରୀମାନ୍ ବାଞ୍ଛାନିଧି ସାଧୁଶର୍ମାଙ୍କ ଦ୍ୱାରା ସଂଶୋଧିତ

ମୁଦ୍ରାକର—ଶ୍ରୀ ଶ୍ୟାମସୁନ୍ଦର ପାଢ଼ୀ
ଶାରଦା ପ୍ରେସ୍, ବ୍ରହ୍ମପୁର (ଗଞ୍ଜାମ)
୧୯୩୨

ମୂଲ୍ୟ ୪୦/୦

# ଓଁ ତତ୍‌ସତ୍

ଭକ୍ତମାନେ ଏହି ଅମୂଲ୍ୟରତ୍ନ ମହାଲକ୍ଷ୍ମୀ ସ୍ତୁତି ଝଣ୍ଡିବ ନେଇ ଜୀବନର ସାର କରନ୍ତୁ । କାହିଁକିନା ଯାହାଙ୍କର ହୃଦୟରେ ନିଜଗତ ଓ କାନ୍ତ ବ୍ରହ୍ମଯାଏ ସୃଷ୍ଟିହୁଅନ୍ତି । ତାହାଙ୍କର ସ୍ତୁତି ପଠନ କରିବାର ଆମ୍ଭମାନଙ୍କର କର୍ତ୍ତବ୍ୟ କର୍ମ । ଇତି ।

ଶ୍ରୀଲକ୍ଷ୍ମୀନାରାୟଣାଭ୍ୟାଂ ନମଃ

# ମହାଲକ୍ଷ୍ମୀ ସ୍ତୁତି

ନମସ୍ତେ ମହାଲକ୍ଷ୍ମୀ ଗୋ ବୈକୁଣ୍ଠ ବାସିନୀ ।
ଅଭୟ ପଦତଳେ ଗୋ କରୁଛୁ ଦର୍ଶନ ।୧।

(ଜୟ) ଜୟ ମହାଲକ୍ଷ୍ମୀ ଗୋ ବିଷ୍ଣୁଙ୍କ କୋଳେ ଥାଅ ।
ଜଗତଜନଙ୍କୁ ପଡ଼ି ଦେବାକୁ ବୁଲୁ ଥାଅ ।୨।

ଜୟ ଜୟ ମହାଲକ୍ଷ୍ମୀ ଗୋ କ୍ଷୀରସିନ୍ଧୁ ସୁତା ।
ଏ ଘୋର ବିପଦୁ ମତେ ଉଦ୍ଧର ଜଗନ୍ମାତା ।୩।

ଜୟ ଜୟ ମହାଲକ୍ଷ୍ମୀ ଶ୍ରେଷ୍ଠ ମହାରାଣୀ ।
ଅଷ୍ଟ ଅଙ୍ଗେ ଡ଼ାକିଲା ଶୀଘ୍ର ତ୍ରାଳିଣୀ ।୪।

ସେତେ ଦୁଃଖରୁ ତାହାକୁ ଦେଲୁ ଯେ ଉଦ୍ଧାର ।
ଧନ ଜନ ରତ୍ନରେ ତା ପୁର ଗଲା ପୂରି ।୫।

ଏ ବିପତ୍ତିରୁ ଉଦ୍ଧାର କରିବ ବୋଲି ତୁମ୍ଭେ ।
ଅଷ୍ଟ ଅଙ୍ଗେ ଡ଼ାକୁଛି · ନଶୁଣ ବିପଁା ଲବେ ।୬।

ନମସ୍ତେ ମହାଲକ୍ଷ୍ମୀ ଗୋ ପଦ୍ମନାଭ ବନ୍ଧୁ ।
ପଦ୍ମେ ଜନକର ମାଗୋ ଗୁହାରି ଶୁଣୁଥାଅ ।୭।

ମହାଘୋର ସଙ୍କଟରେ ଅଛି ମୁହିଁ ପଡ଼ି ।
ଦିବାନିଶି ଚିନ୍ତା ନୀରେ ଯାଉଅଛି ବୁଡ଼ି ।୮।

ବିପଦଭଞ୍ଜନୀ ବାନା ଉଡାଅ ତ୍ରିଜଗତେ ।
ବିପଦାର୍ଣ୍ଣବରୁ ମାଗୋ ଉଦ୍ଧାର କର ମତେ ।୯।

ନମସ୍ତେ ମହାଲକ୍ଷ୍ମୀ ଗୋ ଅଭୟ ବରଦାନୀ ।
ବିନମ୍ରେ ଡାକୁଛି ବାରେ ଦେଖ ମୋ ଦୁର୍ଦ୍ଦିନୀ ।୧୦।

ଏ ଦୁଃଖ ସାଗରେ ମୁହିଁ ଭାସୁଅଛି ମାତ !
ତୁମ୍ଭ କୃପାବଳେ ନିରଖିଲେ ହେବ ହିତ ।୧୧।

ନମସ୍ତେ ମହାଲକ୍ଷ୍ମୀ ବ୍ରହ୍ମାଣ୍ଡ ପାଳ ଜନ ।
ବିପଦୁ ଉଦ୍ଧର ମୋତେ ଜଗତେ ରଖ କୀର୍ତ୍ତି ।୧୨।

ସଦା ବିପଦାର୍ଣ୍ଣବରେ ଭାସୁଅଛି ମୁହିଁ ।
ଉଦ୍ଧାରିବାକୁ ମୋତେ ସାହା କେହି ନାହିଁ ।୧୩।

ତୁମ୍ଭ ଶ୍ରୀପଦରେ ମାଗୋ ବଳାଉଛି ଆଶା ।
ନିଶ୍ଚେ ଉଦ୍ଧାରିବେ ବୋଲି କରୁଛି ଭରସା ।୧୪।

ତୁମ୍ଭ ପ୍ରସନ୍ନରେ ମାଗୋ ଦରିଦ୍ର ରାଜା ହୋଇ ।
ତୁମ୍ଭ ଅପ୍ରସନ୍ନେ ରାଜା ଦରିଦ୍ର ହୁଅଇ ।୧୫।

ତୁମ୍ଭେ ନ ରଖିଲେ ମାଗୋ ଏ ଦୀନ ଜନକୁ ।
ନିଶ୍ଚେ ଗଲି ଘର କେହି ନାହିଁ ରଖିବାକୁ ।୧୬।

ଶ୍ରୀଚରଣେ ଆଶା କରି ଭାସୁଛି ଦୁଃଖରେ ।
ତୁମ୍ଭପରି ଦୁଃଖନାଶିନୀ ଥାଉଁ ଏ ସଂସାରେ ।୧୭।

ଜୟ ଜୟ ମହାଲକ୍ଷ୍ମୀ ଗୋ ବିପଦ ଭଞ୍ଜନୀ ।
ବିପଦକାଳେ ଡାକିଲେ ଉଦ୍ଧାର କରୁ ପୁଣି ।୧୮।

ସଙ୍କଟନାଶିନୀ ମାଗୋ ଦୟାକର ମୋତେ ।
କରି ପ୍ରସାରି ମାଗୁଛି ତୁମ୍ଭ ପାଦଗତେ ।୧୯।

ବ୍ରାହ୍ମଣଠାରୁ ଚଣ୍ଡାଳ କୀଟପତଙ୍ଗନ୍ତେ ।
ତୁମ୍ଭପଦ ନଖାଇ ଅଛନ୍ତି କେ ଜଗତେ ।୨୦।

ତୁମ୍ଭ ଦ୍ରୋହି ଜନେ ମାଗୋ ଅର୍ଥ ନ ମିଳଇ ।
ଯେସନେ ଅରଜିଲେ କେବେ ପେଟ ନ ପୁରଇ ।୨୧।

ନମସ୍ତେ କମଳା ମାଗୋ ଅତି ଦୟାବତୀ ।
ସ୍ଥାବର ଜଙ୍ଗମ କୀଟ ଆଦି ପାଳୁ ନିତି ।୨୨।

ଜୟ ଜୟ ମହାଲକ୍ଷ୍ମୀ ଗୋ କରିବାରେ ଦୟା ।
ଏ ଦୀନ ଜନରେ ମନ୍ଦ ନ କରଗୋ ମାୟା ।୨୩।

ତୁମ୍ଭ ଦୟାବଳେ ମାଗୋ ଦରିଦ୍ର ଜନର ।
କି ଦୁଃଖ ଅବା ଅଛି ସର୍ବ ସୁଖ ତାର ।୨୪।

ତୁମ୍ଭ ଦୟା ବିନେ ମାଗୋ ବହୁ ଦୁଃଖ ପାଇ ।
ଚଣ୍ଡାଳ ହୁଅଇ ଅର୍ଣ୍ଣ ବସ୍ତ୍ର ନମିଳଇ । ୧୫ ।

ତତେ ନଭଜଇ ମାଗୋ ସଂସାରେ ଯେଉଁ ପ୍ରାଣୀ ।
ଦରିଦ୍ର ହୁଅଇ ବହୁ ଦୁଃଖ ପାଏ ପୁଣି । ୧୬ ।

ପ୍ରାତଃରୁ ଉଠି ଯେ ତୋର ନାମକୁ ସୁମରଇ ।
ଧନଜନ ଗୃହରେ ସର୍ବ ସୁଖିହୋଇ । ୧୭ ।

ଧନଜନେ ଆଶା ନକରି ଯେ ସୁମରଇ ।
ସକଳ ପାପନାଶେ ବୈକୁଣ୍ଠେ ବସଇ । ୧୮ ।

ନମସ୍ତେ କମଳାମାଗୋ ସାଗର ଦୁହିଣୀ ।
ନମସ୍ତେ କମଳା ମାଗୋ ବିଷ୍ଣୁଙ୍କ ଘରଣୀ । ୧୯ ।

ବ୍ରହ୍ମା ହର ତୋର ପଡ଼ା ଖାଇଯେ ବଞ୍ଚନ୍ତି ।
ଦେବତାମାନେ ତୋର ପଦରେ ସୁଖିହୋନ୍ତି । ୨୦ ।

ଶୁଣିଅଛୁ ଅନ୍ତର ପୂର୍ବର ତୋ ଚରିତ ।
କୃଷ୍ଣ ବଳରାମ ଖାନ୍ତି ତୋର ଯତ ଭାତ । ୨୧ ।

ମାର୍ଗଶିର ମାସରେ ଗୁରୁବାର ଦିନ ।
ଜଗତେ ପଡ଼ା ଦେବାକୁ କଲୁରୁ ଭ୍ରମଣ ୨୨ ।

ଶ୍ରୀଅଚାଣ୍ଡାଳୁଣୀ ଘରେ ପ୍ରବେଶ ହୋଇଲୁ ।
ତାର ଦୁଃଖ କଷ୍ଟ ଫେଡ଼ି ଧନରେ ପୂର୍ଣ୍ଣ କଲୁ ।୨୪।

ଜଗନ୍ନାଥ ବଳରାମ ଆସିବାର ବେଳେ ।
ଚଣ୍ଡାଳୁଣୀ ଘରେ ଉଚ୍ଛିଷ୍ଟ ଦେଖିଲେ ତୋତେ ହୋଲେ

ଭାଇଙ୍କ ଧିକାର ତୋତେ ଦେଲେ ଘଉଡ଼ାଇ ।
ସମୁଦ୍ର କୂଳେ ଉଆସ ତୋ କଲୁ ତହିଁ ଯାଇ । ୨୫ ।

ତୋ ବିହୁନେ ରାମକୃଷ୍ଣ ଦରିଦ୍ର ହୋଇଲେ ।
ତୁମ୍ଭେ ବସ୍ତ୍ରଟେକ ଅର୍ଣ୍ଣ ଦେବାକୁ ଖାଇଲେ । ୨୬ ।

ହସ୍ତି କମଳିନୀ ମାଗୋ ହସ୍ତ ଧରିଥିଲୁ ।
ସେତେବଡ଼ ପ୍ରଭୁଙ୍କୁ ଦରିଦ୍ର କରିଥିଲୁ । ୩୭ ।

ତୋ ବନ୍ଦନେ ସଂସାରେ ଅଜ୍ଞ କେ ବଞ୍ଚଅଛୁ ।
ଚଉଦ ଭୁବନେ ତୋର ଯଶ ପୂରିଅଛୁ । ୩୮ ।

ହୀନ ଅରକ୍ଷିତ ହୋଇ ଡାକୁଛୁ ତୁମ୍ଭଙ୍କୁ ।
ଅରକ୍ଷ କାଳରେ ସାହା ହୁଅ ଏଦୀନଙ୍କୁ । ୩୯ ।

ତୁମ୍ଭେ ନରଖିଲେ ମାଗୋ ହୋଇବୁ ଅନାଥ ।
ଜୀବନ ଗଲାଣି ନଷ୍ଟେ କହୁଁଅଛୁ ସତ୍ୟ । ୪୦ ।

ଦୋଷ କରିଥିଲେ ମାଗୋ କ୍ଷମାକର ଦୋଷ ।
ଏ ଅଢଙ୍ଗ କାଳେ ମାଗୋ ନକର ମନେ ରୋଷ ।

ନଳିନୀ ପତ୍ରରେ ଜଳ ଯେସନେ ଟଳମଳ ।
ଥୟ ନୋହୁଛି ମୋ ମନ ବାତ ହୁଁ ଚଞ୍ଚଳ । ୪୧ ।

କୁବୁଦ୍ଧି କରୁଛୁ ମାଗୋ ବୁଦ୍ଧି ଦିଶୁନାହିଁ ।
ଶେଷକାଳେ ତୋହ ପଦେ ମତି ଅଛୁ ଦେଇ । ୪୩ ।

ରଖିବା ନରଖ ମାଗୋ ଲଗାଉଛୁ ଆଶା ।
ନିଶ୍ଚେ ଉଦ୍ଧରିବ ବୋଲି କରୁଛୁ ଭରସା । ୪୪ ।

ଗରବଗଞ୍ଜନୀ ମାଗୋ ଗର୍ବକୁ ନସହୁ ।
ଗର୍ବଯେ କରଇ ତାର ଗର୍ବ ଚୂରିଦେଉ । ୪୫ ।

ତାକୁ ମହା ଦୁଃଖରେ କରାଉ ଅଚଳ ।
ପୁଣି ତୋତେ ସୁମରିଲେ ମିଳେ ଅନ୍ନଜଳ । ୪୬ ।

କରୁଅଛୁ ମୁହିଁ ଅବା କରିବାରୁ ଗର୍ବ ।
ସଙ୍କଟେ ପକାଇ ମୋର ଗର୍ବ କଲୁ ଖର୍ବ । ୪୭ ।

ଏବେ ତୋର ପଦେ ମାଗୋ କରୁଛୁ ପ୍ରମାଣ ।
ସଂକଟେ ପକାଇ ମୋର ପୂରିଅ ମନସ୍କାମ । ୪୮ ।

ନମସ୍ତେ କମଳା ମାଗୋ ନମସ୍ତେ ପଦ୍ମାଳୟା ।
ଏ ବିପଦ କାଳେ ମାଗୋ ହୁଅ ମୋତେ ସାହା ।

ବ୍ରହ୍ମାଣ୍ଡପାଳିନୀ ମାଗୋ ମହିମା ମହାମେରୁ ।
ନମସ୍ତେ ହରିପ୍ରୀୟାଗୋ ଫେଡ଼ ଏ ସଙ୍କଟରୁ । ୫୦ ।

ନମସ୍ତେ ଇନ୍ଦିରା ମାଗୋ ନମସ୍ତେ ଲୋକମାତା ।
ମାଁ ବୋଲି ଡାକୁଛି ମୁଁ ନଶୁଣୁ ବାରତା । ୫୧ ।

ଏବିପଦ କାଳେ ଯେବେ ନହେବୁ ମୋତେ ସାହା ।
ଜାଣିବି ନିଶ୍ଚୟ ତୋହଠାରେ ନାହିଁ ଦୟା । ୫୨ ।

ଏ ଜୀବନେ ଥିଲେ ଅଉ ନାହିଁ ମୋର ଆଶା ।
ତୁମ୍ଭ ପଦ୍ମପାଦେ ମାଗୋ କରୁଛି ଭରସା । ୫୩ ।

ସଂକଟ ଫେଡ଼ିବୁ ଯେବେ ସଂସାରେ ସୁଖି ହେବି ।
ତୋ ନାମକୁ ଭଜି ମଲେ ସଂସାରୁ ତରିବି । ୫୪ ।

ଏ ଦୁଇ କଥା ମାଗୋ ମନବାଞ୍ଛା ମୋର ।
ରଖ ଅବା ମାର ଅବା ଶୀଘ୍ର ଯାହା କର । ୫୫ ।

ବିଳମ୍ବ କଲେଟି ମାଗୋ କାର୍ଯ୍ୟ ହେବ ନାଶ ।
ଦାସ ଦୁଃଖରେ ଭାସିଲେ ଲଭିବ କି ପୌରଷ । ୫୬ ।

ଦୁଃଖ ନିବାରଣୀ ବୋଲି କହିଲ ନିଶ୍ଚୟ ।
ରଖ ନରଖ ମୋ ମନୁ ଗଲାଟି ସଂଶୟ । ୫୭ ।

ଦୁଃଖ ହେଲା ବୋଲି ମାଗୋ ନାହିଁ କିଛି ଭୟ ।
ତୁମ୍ଭ ଅଭୟ ପଦେ ମୁଁ କରିଅଛି ଲୟ । ୫୮ ।

ଏସଂକଟ ଯଦି ମାଗୋ ନଦେଇ ଥାନ୍ତୁ ମୋତେ ।
ତୋ ମହିମା ବୁଝି କେବେ ଜାଣନ୍ତି କେମନ୍ତେ । ୫୯ ।

ଦୁଃଖ ଯଦି ନଥାନ୍ତା ଭଜନ୍ତା କେ ନାମକୁ ।
ପାମର ଦୀନ ଅକ୍ରୂର ଡାକନ୍ତା କାହାକୁ ।

୰କବି ଗୋପାଳ କୃତ

ନବାକ୍ଷର

# ଅଧ୍ୟାତ୍ମ ରାମାୟଣ

ଭାଷା ସରଳ ଭାବ ମଧୁର

ମୂଲ୍ୟ ଏକଟଙ୍କା ଆଠଅଣା

ପ୍ରାପ୍ତିସ୍ଥାନ

ଶ୍ୟାମସୁନ୍ଦର ପାତ୍ରୀ

ପ୍ରୋପ୍ରାଇଟର

ଶାରଦା ପ୍ରେସ୍

ବ୍ରହ୍ମପୁର (ଗଞ୍ଜାମ)